# ହରଷର ମୂଳକ

ଲେଖକ
ଦାଶ ବେନହୁର

ଚିତ୍ର
ଅଶୋକ ଲେଙ୍କା

ପ୍ରକାଶକ :
ଆଲେଖ୍ୟ ପ୍ରକାଶନୀ
୧୩୯/ଏ- ଶହିଦ ନଗର, ଭୁବନେଶ୍ୱର
ଫୋନ୍-୫୭୬୫୭

ମୁଦ୍ରଣ :
ସତ୍ୟଶିବ ପ୍ରିଣ୍ଟସ
୮୦/ଏ ଶହିଦ୍ ନଗର
ଭୁବନେଶ୍ୱର
ଫୋନ : ୫୬୫୪୧



ମୂଲ୍ୟ :
ପନ୍ଦର ଟଙ୍କା

ପ୍ରଥମ ସଂସ୍କରଣ
୧୯୯୩

# ହରଷର ମୂଲକ

ସୂଚୀ

# ଛାଇଧରା ବାଇଆ



ଛାଇଧରା ବାଇଆ,
ଆସିଥିଲା ଖରାବେଳେ
ନାଆଁ ତା'ର କାଇଆ,
କଳା କିସ ଗୁମର ;
ଆକାଶରେ ଘୋଟିଗଲା
ମେଘ କଳା ଘୁମର । ୧ ।

ମେଘଧରା ଅସୁର,
ସଂଜବେଳେ ଆସିଗଲା,
ରାତି ତାର ଶଶୁର,
ବସି ବସି ହସିଲା ;
ମେଘମାନେ ଲୁଚିଗଲେ,
ତୋଫା ଜହ୍ନ ଦିଶିଲା । ୨ ।

ଜହ୍ନଧରା କେଉଟ,
ଜାଲ ଆଣି ବସିଥିଲା
ଗଛ ଚଢ଼ି କେଉଟ,
ଗଛତଳେ ପୋଖରୀ ;
ପାଣି ଦେହେ ଜହ୍ନ ଗଲା
ମିଛେ ମିଛେ ପହଁରି ।୩।

ମିଛଧରା ପୋଲିସି,
ଆସୁ ଆସୁ ରଡ଼ିକଲା,
ଆଣ ଗୋଟେ ଇଲିସି,
କାଇଁ ମାଛ କାଇଁରେ ;
ମିଛକୁହା ଲୋକଯାକ
ପଶିଗଲେ ନଈରେ ।୪।

ନଈଧରା ଯନ୍ତିରୀ
ଗାଡ଼ି ଚଢ଼ି ଆସିଥିଲେ
ପାଶେ ଥିଲେ ମନ୍ତିରୀ
ଘାଟପୋଲ ନାଆଁରେ ;
ବୁହେ ଲେଖାଁ ରଡ଼ିକଲେ
ସଭା କରି ଗାଆଁରେ ।୫।

ସଭା ବଡ଼ ଅଡୁଆ,
ସତକଥା କହିଦେଲେ
ଶୁଣିବାକୁ କଡୁଆ ।୦।




ମାଟିଘର ଆମଘର ;
ଆମଘର ବୋଲି
ଯୋଉ କଥାଟି,
ନାଇଁରେ ତୁଳନା ତା'ର । ୦ ।

ସକାଳ ପାଇଲେ
ଝରଇ ତହିଁ
କଅଁଳ ସୂରୁଯ ଖରା ;
ବାରି ପଛପଟ
ଖଳା ବାଡ଼ିରେ
ବାଛୁରୀ ମାରଇ ଚିରା । ୧ ।

ଆମ କୂଅ ପାଣି
କାଲୁଆ ଭାରୀ
ମଧୁର କାହିଁରେ କ'ଣ ;
ଖରା ଚମକିଲେ
ଗଡ଼ିଶ ସେଠି
ଖେଳୁଥାଏ ଛନଛନ । ୨ ।

ଅଗଣା ମଝିରେ
ମାଟି ଚଉରା
ହାଣ୍ଡିଶାଳେ ଷଠିଘର ;
ଧାନ ମାଣ୍ଡୁ ତଳେ
ଦଶରା ପେଡ଼ି
ଦାଣ୍ଡ ପଟେ ଦିଅଁ ଘର । ୩ ।
ବାଡ଼ିରେ ନଡ଼ିଆ
ଆମ୍ବ ପଣସ
ବରକୋଳି ନରକୋଳି ;
ସାରା ଗାଁଟାରେ
ଆମ ପିଜୁଳି
ମିଠାରେ କିଏ ତା' ଭଳି । ୪ ।
ଆମ ଗୁହାଳରେ
ବଉଳା ଆମ
ଏଡ଼ିକି ସୁଧାର ଗାଇ ;
ପେଟତଳେ ତା'ର
ଗଲେ ଅଇଲେ
ଟିକିଏ ହଲଇ ନାହିଁ । ୫ ।

ପଥର ପାହାଚ
ଆମ ଦୁଆରେ
ହାତୀ ପିଠି ପରି ବଡ଼
ଆମ ଘର ଢିଙ୍କି
କିଏ ଟେକିବ
ଏଡ଼ିକି ଶାଳୁଆ ଗଡ଼ । ୬ ।
ହେମ ନାନୀ ଆମ
ଗାଇଲେ ଗୀତ
ମନ ହୋଇଯାଏ ମୋହି ;
ଗାଆଁଟା ଯାକରେ
ଘରେ ଆମର
ସବୁଠାରୁ ବେଶୀ ବହି । ୭ ।
ଆମଘର ଚିଜ
କୋରଣା କାଙ୍କ
ଘର ଘର ହୋଇ ବୁଲେ ;
ଯେ ଯାହା ଲୋଡ଼ିଲେ
ନିଅଇ ମାଗି
ଫେରେଇ ଦିଅଇ ଭଲେ । ୮ ।

ଆଚ୍ଛାଘର ଆମଘର ;
ଆମ ବାପା ବୋଉ,
ସବୁ ଠୁ ଭଲ
ଆମଘର ସ୍ୱର୍ଗପୁର । ୦ ।



# ଟମକଗାଡ଼ି

ଟୁକୁନା ହାତରେ
ନହକା ବେତ
ବାପୁନା ହାତରେ ଛଡ଼ି;
ବାହାରିଲେ ଦିନେ
ବଜାର ବୁଲି
ଚଢ଼ିଲେ ଟମକ ଗାଡ଼ି ।।୧।।
ଟମକଗାଡ଼ିରେ,
ଏକେଲା ଘୋଡ଼ା,
ପକାଏ କଦମ ଚାଲି;
ଟପ ଟପ ଟପ
ଟପର ଟପ
ଗାଡ଼ିଯାଉଥାଏ ହଲି ।।୨।।
ବଜାର ଭିତରେ,
ଲୋକ ଗହଳି,
ଘୋଡ଼ାଚାଲେ ଠପ ଠପ;
ଟୁକୁନା ନଚାଏ,
ନହକା ବେତ,
ବତୀ ଜଳେ ଦପ ଦପ ।।୩।।
ବାପୁନା କହିଲା
ଟୁକୁନା ଭାଇ
ବୁଲାଅ ଟମକ ଗାଡ଼ି;
ବେଳ ଗଡ଼ିଲାଣି
ହେଲାଣି ସଂଜ
ଘରେ ହୁରି ଯିବ ପଡ଼ି ।।୪।।
ଗାଡ଼ି ଫେରୁଥାଏ
ପବନ ବେଗେ
ଘୋଡ଼ା ଧାଏଁ ଧଇଁ ସଇଁ;
ଟୁକୁନା ବାପୁନା
ଅତରଛିଆ
କାହାକୁ କହିବ ନାଇଁ।।୦।।




ପୋଖରୀ ନାମକ
ରାଇଜରେ ଦେଖ
ଫୁଟିଚି ପଦୁଅଁ କଇଁ;
ତାଆରି ଭିତରେ
କେଜାଣି କେତେନା
ସହର ବଜାର ସାଇ ।୧।
ମଣିଷ ଗହଳି
ପରି ନାନାଜାତି
ମାଛମାନେ ପଲ ପଲ;
ଚାଲିଚି ନିଇତି
କେତେ କାମଦାମ
ପାଣି ଦିଶେ ଝଲମଲ ॥୨॥

ବଇରି ପରିକା
ବସିଅଛି ବଗ
କାହାକୁ ଅନିଶା କରି;
କୋଉ ଗଭୀରରେ
କଇଁଛ ଗୋସେଇଁ
କେଜାଣି ଚାଲଇ ଥିରି ॥୩॥
ଡାହୁକ ଡାକରା
ପାଣି କୁଆ ରଡ଼ି
ପୋଖରୀରେ ଚାଲେ ନିତି;
ତଥାପି ରାଇଜେ
ଶାସନ ଚାଲିଚି
ମାଛ ଦେଶେ ନାଇଁଭୀତି ॥୪॥

ବେଙ୍ଗଯେତେ ସବୁ
ପୋଲିସି ସଇନ
କଟ କଟ ରାଇଁ ରଡ଼ି;
ହୁସିଆର ବୋଲି
ଛଟକେ କହନ୍ତି
ମାଛରଙ୍କା ଯାଏ ଉଡ଼ି ॥୫॥
ମୁରବୀ ସମାନ
ବୁଲେ ବଡ଼ ମାଛ
ସାନ ସବୁ ଡ଼ରି ହରି;
ଯେ ଯାହାର କାମ
ତୁଲାଇ ନିଅନ୍ତି
ଆଦେଶ ପାଳନ କରି॥୬॥
ମାଛ ରାଇଜରେ
କିଏ ସେ ଡ଼ାକ୍ତର
କିଏ ଅବା ବଡ଼ ନେତା;
କିଏ ସେ ଗୁରୁଜୀ
କିଏ ଅବା କାଜି
ଜାଣିବା ଗହନ କଥା ॥୭॥
କୁନିଆଁ ଆମର
ପୋଖରୀକୁ ଯାଇ
ଗାଧୁଅଇ ସବୁଦିନେ;
ତାଆରି ଭିତରେ
ରାଇଜଟେ ଅଛି
ନଭାବଇ କେବେ ମନେ ॥୮॥

# ସରିଲା ବରଷା ଶରତ ଆସେ





ଫାଟି ଫୁଟି ଯାଏ
ଫୁଟି କାକୁଡ଼ି,
ଓଉଦିଶେ ଫଡ଼ ଫଡ଼ା;
ସଜନା ଗଛରେ ସଅଁବାଳୁଆ
ଝୁଲଣ ହେଲାଣି ବୁଢ଼ା ।।୧।।

ଜହ୍ନି ଝୁଲିଥାଏ
ପତର କଡ଼େ,
ଲାଉ ଶୋଇଥାଏ ଚାଳେ;
ଗୁଆଁଳି ଫଳିଚି ଥୋଲି ଥୋଲିଆ
ବାଇଗଣ ଝୁଲେ ଡ଼ାଳେ ।।୨।।

ସାତ ପତୁରିଆ
କଅଁଳ ଭେଣ୍ଡି
ଉଇଁଥାଏ ପଗେ ପଗେ;
ଗଣ୍ଠିରେ ଗଣ୍ଠିରେ ଉଠୁଚି ମକା
ଚଅଁର ମେଲେଇ ବାଗେ।।୩।।

ଗହୀର ହିଡ଼ରେ
ମଉଳା ଛତୁ
ପାଳଛତୁ ବାଢ଼ି ଚାଳେ;
ଅଳରାଳଟିରେ ଟୁସି କଲରା
ସାରୁ ଫୁଲୁଥାଏ ମୂଳେ ।।୪।।

ବୋଇତି କଖାରୁ
ପାଣି କଖାରୁ
ପତର ଏଡ଼େକୁ ଏଡ଼େ;
ଛଚିନା ହଲୁଚି ସାପ ପରିକା
ଡ଼ଙ୍କମାଡ଼େ ବାଡ଼ କଡ଼େ ।।୫।।

ସରିଲା ବରଷା
ଶରତ ଆସେ
ଫଳେ ଫୁଲେ ହସେ କ୍ଷେତ;
ବିଲବାଡ଼ି ସବୁ ଫସଲ ଭରା
ଜହ୍ନ ଗାଉଥାଏ ଗୀତ ।୬।

# ପାଣି ଆମ ପବନ



ବାଲଟିରେ ପାଣିଆସେ
ପାଣିଆସେ ଢ଼ାଲରେ,
ପତରରେ ପାଣି ପଡ଼େ
ପାଣି ଭିଜେ ମୂଳରେ,
ପାଣି ଆମ ଜୀବନ;
ଆମେ ସବୁ ଫୁଟ୍‌ବଲ୍
ପାଣି ଆମ ପବନ ।।୧।।

ପାଣି ଦିଶେ ନିରିମଳ
ପାଣିହୁଏ ଗୋଳିଆ,
ପାଣିଯେବେ ଫଣାଟେକେ
ମୁଣ୍ଡପୋତେ ନୋଳିଆ,
ପାଣି ଯହିଁ ବରଷେ;
ନାଚେ ଗଛ ନାଚେ ଲତା
ମାଛ ଖେଳେ
ହରଷେ । ୨ ।

ମାଠିଆରେ ପାଣି ଶୁଏ
ପାଣିଛପେ ପାହାଡ଼େ,
କୂଅପାଣି ଠିଆ ହୁଏ
ଚାରିକାନ୍ଥ ଉହାଡ଼େ,
ପାଣି ଯେବେ ରୁଷଇ;
ଠାଉ ଠାଉ ହୁଏମାଟି
ହତଶିରୀ ଦିଶଇ ।୩।

ଝରଣାରେ ପାଣିବହେ
ବହେ ପାଣି ନଳରେ,
ପାଣିଉଠେ ଦଉଡ଼ିରେ
ପାଣି ଉଠେ କଳରେ.
ପାଣିବଢ଼ ମନୁଆଁ;
କେତେବେଳେ ମିଠାଫଳ
କେବେ ଲଙ୍କା
ଧାନୁଆଁ । ୪ ।

ପାଣି କେବେ ମେଘ ସାଜେ
କେତେବେଳେ ବରଫ,
କେଉଁଠାରେ ଅମାନିଆଁ
କେବେ କାହା ତରଫ,
ପାଣି ଆମ ସମ୍ପଦ;
ହେଳା କଲେ ଭେଳାବୁଡ଼େ
ମାଡ଼ିଆସେ ବିପଦ । ୫ ।

ପାଣି ପାଇଁ ଆନିକଟ
ପାଣିପାଇଁ ସଅଁପ,
କେନାଲରେ ପାଣିଚାଲେ
ଲାଗେ ପାଣି ପଅଁପ୍,
ପାଣି ପରା ଜୀବନ;
ବେଲୁନ୍‌ର ଜଳ ଆମେ
ପାଣି ଆମ ପବନ । ୬ ।

# ଶରତର ମୁଲକ



ଆକାଶରେ,
ତାରାମାନେ,
ଗୋଟି ଗୋଟି ନିଆରା,
ମେଘନାଇଁ
ପାଣିନାଇଁ,
ଜହ୍ନରାତି ଫୁଆରା,
ଘନନୀଳ ଆକାଶ;
କେଣେଗଲେ
ଝଡ଼ିବଢ଼ି
କାହିଁଗଲା ବତାସ । ୧ ।

ବିଲବାଡ଼ି
ସବୁଆଡ଼େ
ସବୁଜିଆ ଚଦର,
ନଇଧାରେ
କାଶ ତଣ୍ଡୀ
ଦିଶେ କେଡ଼େ କଦର
କିପୋଖରୀ ଗଡ଼ିଆ;
ଧଳାନାଲି
ନୀଳକଇଁ
ଫୁଟେବଡ଼ ବଢ଼ିଆ । ୨ ।

ଶରତର
ଋତୁ ଏଯେ
ହରଷର ମୂଳକ,
ଭରାକ୍ଷେତ
ଭରାମାଟି
ମନେ ଆଣେ ପୁଲକ
ଅଶିଣର ପୂନେଇଁ,
ସବୁଠାରୁ
ତୋଫାଳିଆ
ମନ କିଣେ ମନେଇ । ୩ ।
ଆମଘର
ଅଗଣାରେ
ମାଟିକୁଣ୍ଡ ଚଉରା,
ଚାରିପଟେ
କେତେଫୁଲ
ଗେଣ୍ଡୁ ହରଗଉରା,
ଜହ୍ନିଓଷା ସକାଶେ;
ସତେଅବା
ଜହ୍ନିଫୁଲ
ଏଡ଼େ ହୋଇ ବିକାଶେ । ୪ ।

ଦଶହରା
ଛୁଟିଆସେ ପାଦଚିପି ମଠେଇ,
ମହାଳୟା
ଫଳପୂଜା
ଆଗେ ଆଗେ ପଠେଇ,
ଶରତର ଚହଳ;
ଦେବୀ ମେଢ଼
ସଜବାଜ
ଚଉଦିଗେ ଗହଳ । ୫ ।
ସହରରେ,
ଭିଡ଼ଜମେ,
ଗାଆଁ ଭୂଇଁ ମହକେ,
ନୂଆ ଲୁଗା
ଜାମା ଯୋଡ଼
ଦେହମନ ଚମକେ,
ଦିନଖେଳେ ଭଉଁରୀ;
ଚାହୁଁ ଚାହୁଁ
ଛୁଟିସରେ
ମାମୁଁଘର ଚଉଁରୀ । ୦ ।

# ଛତୁରେ, ମନ ମତୁରେ

ଛତୁରେ...
ମନ ମତୁରେ...
ଛାପୁଲିଆ ପାଳଛତୁ;
ଛତୁ ବୋଲି ବଡ଼
ମଗଜ ତୋ'ର
ଆମ୍ବିଳ ଝୋଳରେ ମାତୁ ।୧।
ପାଳଛତୁ ଗଲା
ତଇଲାବାଡ଼ି,
ବାଲିଛତୁ ତାକୁ
ଧଇଲା ଭିଡ଼ି,
ହୁଙ୍କାଛତୁ ବୋଲେ ରହ;
ଜାମୁଛତୁ ସେଠି
ଲୁଚିଚି ଅନା
କଳାମେଘ ପରି ଦିହ ।୨।
ଛତୁମାନେ କଲେ
ଧାଆଁ ଧପଡ଼,
ବାଟରେ ଭେଟିଲେ
ଗହୀର ହିଡ଼,
ନାଡ଼ ଛତୁ ସେଠି ଥିଲା;
ମଉଳା ଛତୁକୁ
ଛାଡ଼ିଲା ଡ଼ାକ
ଲାଗିଗଲା ଛତୁପାଲା ।୩।
ଛତୁପାଲା ଚାଲେ
ଦିନକି ରାତି
ମେଘ ନିରିମଳ
ନାଇଁ ସୁଆତି
ବାଉଁଶ ବୁଦାରେ ଛତୁ;
କେହି ତାକୁଟିକେ
ଡ଼ାକିଲେ ନାଇଁ
ସରିବ ବରଷା ଋତୁ ।୪।
ଜହ୍ନହସେ ଖାଲି ଖାଲି;
ଆସିବ ଏଣିକି,
ଶୀତ କାକର,
ଛତୁ ଦିନ ଯିବ ଚାଲି ।୫।



# ବାଇଗଣ ବାଇଗଣ

ବାଇଗଣ ବାଇଗଣ;
ବାଇଗଣ ତମେ
ଗଳି ପଶିଆ
ସବୁଦିନେ ଜଣସଣ । ୦ ।
କେଉଁଠାରେ ତମେ
ସାଗୁଆ ଧଳା
କୋଉଠାରେ ଜାମୁକଳା;
ଆହୁରି କୋଉଠି
ଗୋଟି ଗୋଟିଆ
କାହିଁଥିବା ଥୋଲା ଥୋଲା । ୧ ।
କୋଉ ବଗିଚାରେ
କଣ୍ଟିଆଳି ତ
କୋଉଠାରେ ନିକଣ୍ଟିଆ
କି ଖରା ବରଷା
ହେମାଳ ଶୀତ
ସବୁଦିନେ ତମେ ଥିଆ । ୨ ।

ଭଜା କି ଭରତା
ମହୁର ଘାଣ୍ଟ
ଆମ୍ବିଳ ବେସର ରାଇ;
ସବୁ ତିଅଣରେ
ହାଜର ତମେ
ସବୁ ପରିବାର ଭାଇ । ୩ ।
ଛଣା ବାଇଗିଣି
ପିଠୋଉ ଚେକା
ବାଇଗଣ ଦହି କଢ଼ି;
ଖାଇବା ଲୋକର
ପଡ଼ିଲେ ମନ
ନାଳ ଟୋପା ଯାଏ ଗଡ଼ି । ୪ ।
ବାଇଗଣ ବାଇଗଣ;
ତୁମରି ପରିକା
ହେବାକୁ ମନ
ଜିଣିବାକୁ ଜନମନ । ୫ ।

# ଆଈଙ୍କର ଫଟୋ



ଅଜା ବୋଇଲେ
ଉଠିବ ଫଟୋ
ଆଈ କହିଲେ ଥାଉ;
ମାମୁଁ କହିଲେ
ସଭିଏଁ ଆସ
ମାଇଁ କହିଲେ ହଉ । ୧ ।

ଚଉକି ଥୁଅ
ପୋଷାକ ପିନ୍ଧ
ସଜାଡ଼ି ହୋଇ ବସ;
ଉଠିଲାବେଳେ
ଫଟୋ ଯେମିତି
ମୁହଁରେ ଥିବ ହସ । ୨ ।

ପିନ୍ଧିଲେ ଅଜା
ଲୁଗାରେ ମୋଜା
ଧଇଲେ ତାଙ୍କ ବାଡ଼ି;
ଆଈ ନାଇଲେ
ସରୁ ଅଳତା
ଲୁଗାରେ ମୋଟା ଧଡ଼ି । ୩ ।

ଫଟୋ ଉଠାଳୀ
ହସିଲେ ଟିକେ
କହିଲେ ଅଜା ଆଈ;
ପାଖକୁ ପାଖ
ଲାଗି ବସିବେ
ଆଈ ଘୁଞ୍ଚିଲା ନାହିଁ । ୪ ।

ଆଈକୁ ଆମ
ବହୁତ ଲାଜ
କେଜାଣି କେତେବେଳେ;
ଟାଣି ଦେଲା ସେ
ଓଢ଼ଣାଟାକୁ
ଫଟୋଉଠିଲା କାଳେ । ୫ ।

ଆସିଲା ଫଟୋ
ଦେଖିଲୁ ଆମେ
ସଭିଏଁଛନ୍ତି ତହିଁ;
ଆଈ ଥାନରେ
ଏଡ଼େ ଓଢ଼ଣା
ମୁହଁଟି ଦିଶୁ ନାହିଁ । ୬ ।

କହିଲେ ଅଜା
ଫଟୋକୁ ଚାହିଁ
ଟିପକୁ ଦେଇ ପୁଣି
ଦେଖରେ ପିଲେ
ଆଈ ନୁହେଁସେ
ବସିଚ୍ଛି ଭାଲୁକୁଣୀ । ୭ ।

# ବଣିଘର ବାଣପୁର



ବଣିଘର, ବାଣପୁର,
ବଣିଘର ବଲାଣୀ;
ଚିଡ଼େଇବନି
କେବେଟି ତାକୁ
ମାରିଦବ କହୁଣୀ । ୧ ।

ବଣିଖାଏ, ଭାତଡାଲି,
ବଣିବୁଲେ ବଜାର;
ସଂସାର ଯାକ
ଆପଣା ତା'ର
କାହିଁ କେତେ ହଜାର । ୨ ।

ବଣିପଢ଼େ, କେତେପାଠ,
ମନମୁନ ଲଗେଇ;
ଅବେଳେ ତାକୁ
ଡ଼ାକିବ ଯଦି
ଦବସିଏ ଭଗେଇ । ୩ ।

ବଣିକରେ, ବାପାମାଆ,
ଯାହାସବୁ କହିଲେ;
ଖେଳୁ ପଛକେ
ଗମାତ କରୁ
ପାଠପଢ଼େ ପହିଲେ । ୪ ।

ବଣି ଗୋଟେ, କୁନିପିଲା
ମନତାର କଅଁଳ;
ସେଇଥିପାଇଁ
ସବୁକଥାସେ
କରି ପକାଏ ସଅଳ । ୫ ।

ବଣି ଦିଶେ, ଏଡ଼େଟିଏ
ମୋଓପରି ଗେଡୁରୁ;
ତୁଚ୍ଛାକଥାରେ
ହୁଏନାସିଏ
ଭୁଟୁଭାଟୁ ଭାଡୁରୁ । ୬ ।

ଆମେ ସବୁ, ବଣିପରି,
ଟିକିଟିକି ଚଢ଼େଇ;
ଗଢ଼ିବା ଆମେ
ଆମ ଦୁନିଆଁ
ସାଜି ଟିକି ବଢ଼େଇ । ୭ ।

# ଠିକ୍ ଘର ସେଇଟା

ମାଟି ଘରଟା
ଦୁଉଲୁ ଦୁଲୁ
ବରଷା କରେ ନାଚ;
ଚାଳ ଦୁଲୁକେ
ଦୁଲୁକେ ଛାତି
ପାଣି ବସାଏ ହାଟ । ୧ ।

କାଠ ଘରଟି
ଧାଡୁରୁ ଧାଡୁ
ହେଇଟି ଚାଲେ କିଏ;
କାଟୁଚି କାଇଁ
କାଠ ଭଅଁର
କବାଟ ପିଟେ କେଏଁ । ୨ ।

ପକ୍କା ଘର
ଦୁମୁରୁ ଦୁମୁ
ସଡ଼କ କଡ଼େ ଠିଆ
ରେଏଳ ଗାଡ଼ି
ଯାଉଚି ଧାଇଁ
ଦୁଲୁକି ଉଠେ ହିଆ । ୩ ।

କୁଡ଼ିଆ ଘର
ଖୁସୁରୁ ଖୁସୁ
ଅନ୍ଧାରେ ଚାଲେ ମୂଷା;
ଅଳିଆ ଝୋଟ
କାଗଜ କନା
ଉଣ୍ଡାଳି କରେ ବସା । ୪ ।

ପଥର ଘର
ଗୁମୁରୁ ଗୁମୁ
ଥିଇରି ହେଲେ କଥା;
ଭଉଁରୀ ଖେଳେ
ସେଇ ପଦକ
କଥାରେ ପଡ଼ି ଲଥା । ୫ ।

ମନର ଘର
ଅତଳ ତଳ
ଶୁଭେନା କିଛି ସେଠି;
ପେଟଟା ପଛେ
କୁହୁଳୁ ଥାଉ
ପାରେନା ଜାଣି ପିଠି । ୬ ।

ଘର ପରା ଏଇଟା;
ମନ ଯହିଁ
ବସା ବାନ୍ଧେ
ଠିକ୍ ଘର ସେଇଟା । ୦ ।

# ଆସିବ ପୂଜା ଏବେ



ବାପା ପିନ୍ଧନ୍ତି
ପେଣ୍ଟ ସାର୍ଟ
ଆଉରି କେତେବେଳେ ;
ଧୋତି ପଞ୍ଜାବୀ
କୋର୍ଟ ସୁଟ୍
ଯେତେବେଳେ ଯା ଚଳେ ।୧।

ବୋଉର ଶାଢ଼ୀ
ଜାତି ଜାତିକା
ସିଲ୍କ କେବେ ସୂତା;
ପୂଜାରେ କିନ୍ତୁ
ପିନ୍ଧଇ ସିଏ
ଟସର ଅବା ମଠା ।୨।

ଜେଜେଙ୍କ ଲୁଗା
ଧୋତି ବେଢ଼ାଣ
ଫତେଇ ଜାମା ଖଦି ;
ଚଦର ତାଙ୍କ
କାଣ୍ଡିଆ ମଠା
କରିଆ କିନ୍ତୁ ରଦି । ୩ ।
ଜେଜିମା ବୁଢ଼ୀ
କସ୍ତା ଖଣ୍ଡେ
ଗୁଡ଼େଇ ହୋଇ ବସେ
ଜାତିଆ ଲୁଗା
ପିନ୍ଧିଲେ କାଲେ
ଅଣ୍ଟାରୁ ତା'ର ଖସେ । ୪ ।
ମୋଓର ଅଛି
ଜାମା ଜଙ୍ଘିଆ
ହଳରୁ କେତେଗୋଟି;
ହେଲେ କି ହେବ
ଭଲ ହଳଟା
ଗଲାଣି ପୂରା ଫାଟି । ୫ ।
ଆସିବ ପୂଜା ଏବେ;
ବୋଉ କହୁଛି,
ବାପା କୁଆଡ଼େ,
ଦି'ହଳ କିଣିଦେବେ । ୬ ।




ଚାଲେ ସିଏ
ଢୁଲୁ ଢୁଲୁ
ସରାମଣି ଧରାକୁ;
ରାତିସାରା
ନାଟକରେ
ଡର ତା'ର ଖରାକୁ । ୧ ।

ଥାଳି ପରି
ଦୁଇ ଆଖି
ହୁଙ୍କାଭଳି ନାକଟି;
ତାଳଗଛ
ଖଣ୍ଡେ ପରି
ଡେଙ୍ଗାଳିଆ ବେକଟି । ୨ ।

ଦୁଇଗୋଡ଼
ଦୁଇ ଖମ୍ବ
ଓଠ ଦୁଇ ନେସେଡ଼ା;
ଜିଭଗୋଟା
ଥଲଥଲ
ଦିଶୁଥାଏ ଖସଡ଼ା ।୩।

ପେଟ ତା'ର
ଟାପୁ ଗୋଟେ
ଦାନ୍ତଗୁଡ଼ା ଶାବଳ;
କାନଦୁଇ
କୁଲାପରି
ମୁଣ୍ଡ ଗୋଟେ ଢାବଲ ।୪।

ପିଠିଗୋଟା
ପଟା ଅବା
ସମତଳ ପଡ଼ିଆ;
କାନେ ତା'ର
ଏଡ଼େ ଫୋଡ଼
ଗଳିଯିବ ନଡ଼ିଆ ।୫।

ପାହାଡ଼ର
ଆରପଟେ
ଅଛି ଯୋଉ କୋରଡ଼;
ତା' ଭିତରେ
ଶୁଏ ସିଏ
ନାଆଁ ତା'ର ଘୋରଡ଼ ।୬।

ଭଲ ଯିଏ
ପାଠ ପଢ଼େ
ତାକୁ ସିଏ ଡରଇ;
ପଚାରିଲେ
ପାଠ ତା'କୁ
ଡରିମରି ଥରଇ ।୭।

# କହିଲୁ ଦେଖି କିଏ?



ଫାଟି ଯାଇଚି
ଜାମା ତାଆର,
ଚିରି ଯାଇଚି ଛତା;
ବହି ମୁଣାରେ
ଦିଇଟା କଣା,
ପାଦରେ ନାଇଁ ଯୋତା ।୧।

କଲମ ତାର
ଚାଲେ ନା ଭଲ
ପେନ୍‌ସିଲ୍‌ଟା ଥୁଣ୍ଟା;
ଜଙ୍ଘିଆ ଗୋଟା
ଢିଲମ୍ ଢିଲା
ଧରି ରହେନା ଅଣ୍ଟା ।୨।

ମୁଣ୍ଡର ବାଳ
ଫୁଉରୁ ଫୁରୁ
ନୁଖୁରା ଚମ ତାର;
ନଖ ବାଜିଲେ
ଖଡ଼ି ପରିକା
ଦେହରେ ପଡ଼େ ଗାର ।୩।

ଏଇଟା ନାଇଁ
ସେଇଟା କାଇଁ
କହେନା ସିଏ କେବେ;
ଆଣ୍ଠୁଆ କରି
କହେନା କଥା
ଯିଏ ପଚାରୁ ଯେବେ ।୪।

ନିଇତି ଆସେ
ଥିଇରି ବସେ
ଅନିଶା କରି ଶୁଣେ;
ପଦିଏ କା'ଠୁ
ଆଦର କଥା
ପାଇଲେ ମନେ ଗୁଣେ । ୫ ।

ଚକ୍ ଚକିଆ
ଦିଶେନା ଦେହ
ପୋଷାକ ସିନା ଫଟା;
ମୁହଁଟା ତାର
ଖୁସି ବାସିଆ
ଆଲୁଅ ହସ ଛଟା । ୬ ।

କହିଲେ ତାକୁ
ଜାଣିଥା ବାବୁ ତୁହି;
ଅସଲ ଗୁଣ
ହାସଲ ପାଇଁ
ସଂପତ୍ତି ଲୋଡ଼ା ନାହିଁ । ୭ ।

ନୁଖୁରା ହଉ
ଦେହ ପଛକେ
ମନ ନକରି ମଳି;
ଆନଜନରେ
ଆଦର କରି
ରହିବ ମିଶି ମିଳି । ୮ ।

ସେଇ ପଦକ
କଥାକୁ ଧରି
ଚାଲିଲା ବୋଲି ସିଏ;
ଦେଶ ଯାକରେ
ରଖିଲା ଟେକ
କହିଲ ଦେଖି କିଏ ? ।

# ଘନ ଦାମ ସନେଇ



ବସା ଦହି ମଲେଇ;
ଆଣିବ ବୋଲି
ମାଡ଼ି ଚାଲିଚି,
ନିଶୁଆ ଘନ ପଲେଇ ।୧।

ପଲେଇଟା ବାଙ୍ଗରା;
ସାଥିରେ ତାର
ଘଣି ହେଇଚି
ସନେଇ ରଥ ଟାଙ୍ଗରା ।୨।

ରଥ ବୋଲେ ମୁଉଁଟି;
ଚଉପାଢ଼ୀରୁ
ଦାମ ବାରିକ,
ଥିଇରି କହେ ହୁଉଁଟି । ୩ ।

ବାରିକଟି ସିଆଣା;
ହେଲେକି ହବ
ତାଆଠୁ ବଳି
ଗଦେଇ ପେଟା ମାହାଣା । ୪ ।

ମାହାଣାର ଚେହେରା,
ଦେଖିଲା ଖୁଣ୍ଟୁ
ଚିହିଙ୍କି ଉଠେ
ଗଉଡ଼ ଯଦୁ ବେହେରା । ୫ ।

ବେହେରାର ଦୁଆରେ;
ପାଉ ନ ପାଉ
ରଡ଼ିଲା ଯଦୁ
ଭାଙ୍ଗିଲା ହାଣ୍ଡି ଭୁଆରେ । ୬ ।

ଘନ ଦାମ ସନେଇ;
ଗଦେଇ ଯୋଗୁଁ
ଫେରିଲେ ଘରେ
ପଛ ଆଡ଼କୁ ଅନେଇ । ୭ ।




ସୁରେଇ ବୁଡ଼େ
ଟବର ଟବ
ବାଲ୍‌ଟି ବୁଡ଼େ ଧଚ;
କୋଳି ଗଛରୁ
ଥିଇରି ପଡ଼ି,
ଖାପଡ଼ ବୁଡ଼େ ଖର୍ । ୧ ।

ବୋତଲ ବୁଡ଼େ
ଡ଼ବର ଡ଼ବ
ଡ଼େଣୁଆଁ ବୁଡ଼େ ଡ଼ପ୍ ;
ନଈର ପାଣି
ଦିକୂଳ ଖାଏ
ଅତଡ଼ା ବୁଡ଼େ ଝପ୍ । ୨ ।

ବତକ ବୁଡ଼େ
ଚବର ଚବ
କଇଁଛ ବୁଡ଼େ ଲତ୍;
କିଏ ଆଇଲେ
ହୁଡ଼ା ଉପରୁ
ବେଙ୍ଗୁଲୀ ବୁଡ଼େ ପତା ୩ ।

ମାଠିଆ ବୁଡ଼େ
ଗବର ଗବ
ପଥର ବୁଡ଼େ ଡୁବ୍;
ବାଡ଼ି ପୋଖରୀ
ତୁଠ ପାଣିରେ
କୁନିଆଁ ବୁଡ଼େ ଟୁବ୍ । ୪ ।

ପାଣିରେ କେହି
ବୁଡ଼ିଲେ ବେଗେ
ଶବଦ ହୁଏ ଏତେ;
ନାଲି ସୁରୂଯ
ସାଗରେ ବୁଡ଼େ
ଶବଦ କାଇଁ କେତେ । ୫ ।

# ଧୁଆଁ ଛାଡ଼େ ଗିଜିଗିଜି



ଏଡ଼େ ବଡ଼ଟେ
ଲୁହା ଘୋଡ଼ାଟେ,
ଗୋଡ଼ ପରିକା
ଦିଇଟା ଚକା,
ତେଲ ପିଇ ପିଇ ଚାଲେ;
ଚାବି ମୋଡ଼ିଲେ
ଉଠଇ ରାବି,
ବସେଇ ବୁଲେ
ନିଜର ଭାବି,
ସହର ବଜାର ବୁଲେ । ୧ ।

ଭୁଡୁରୁ ଭୁଡୁ
ଫଟ ଫଟିଆ,
ଶବଦ କରେ
ମନ ମୋଟିଆ,
ଧୁଆଁ ଛାଡ଼େ ଗିଜିଗିଜି;
ଖରାରେ ଗଲେ
ଖରା କାଟଇ,
ଶୀତରେ ଗଲେ
ଦେହ ଥରଇ,
ବରଷାରେ ଯାଏ ଭିଜି । ୨ ।

ମଟର ପରି
କଲିଜା ସିନା,
ଦେହ ଲଙ୍ଗଳା
ନ ଥାଏ କନା,
ସାଇକେଲ ପରି ଚକ;
ଆଳୁଅ ମୁହାଁ
ବଳର ବଳ,
ମାଡ଼ି ଯାଏ ସେ
ଉଠାଣି ଖାଲ,
ଦିଶେନାଇଁ ତାର ବେକ । ୩ ।

ଛାଇଆ ବେଳେ
ଚଳେଇ ଯିବ,
ସଡ଼କ ବାଟ
ମୁକୁଳା ଥିବ,
ସମତଳ ଥିବ ଭୂଇଁ;
ଶୀତଳ ବାଆ
କୋଳେଇ ନବ,
ପବନ ବେଗେ
ଚକ ଘୁରିବ,
କେହି ନ ପାରିବେ ଛୁଇଁ । ୪ ।

ହେଇରେ ହେଇ
ମାଡ଼ି ଚାଲଇ,
ଉପରେ ବସିଚି କିଏ?
ମୁହଁ ଦିଶୁନି
ଜାଣି ହଉନି,
ଜଣାକି ଅଜଣା ସିଏ । ୦ ।

# ଟକିଆ ମିଠେଇ





ସପନି ମଉସା
ଆମ ଗାଆଁର,
ଜାତିରେ ଗୋସେଇଁ
ମିଠା ବେପାର । ୧ ।

ଏତେ ବଡ଼ ପେଟ
ଏଡ଼ିକି ମୋଟ,
ଚଇତନ ଚୁଟି
ଦିଶଇ ଝୋଟ । ୨ ।

କାହାରି କଥାକୁ
ନ ଥାଏ ଡର,
ଜିନିଷ ବିକନ୍ତି
ଅଦର ଦର । ୩ ।

ମଉସା ଦେଖିଲେ
ଥରେ ସପନ,
ମେଲା ପଡ଼ିଅଛି
ତାଙ୍କ ଦୋକାନ । ୪ ।

ମିଠେଇ ଗୋଟାଏ
ଘୁମ ପରିକା,
ଘେରି ରହିଚନ୍ତି
ପିଲା ପିଚିକା ।୫।

ଖାଇ ଯାଉଚନ୍ତି
ପୁଳାକୁ ପୁଳା
ମିଠେଇ ଦିଶୁଚି
ଦୁଧିଆ ଧଳା ।୬।
ସପନି ମଉସା
ଭାବିଲେ ବସି,
ଖାଇଗଲେ ପିଲା
ମାଗଣା ଆସି ।୭।
ଧପାଲି ଧଇଲେ
ମିଠାକୁ ଭିଡ଼ି,
ପିଲା କାଉ କାଉ
ଛଡ଼ିଆ ଛଡ଼ି ।୮।

ମଉସା କହିଲେ
ଦଉଚି ରହ,
ମୋଡ଼ିବି କାନକୁ
ଉଠିବ କୋହ ।୯।
ଟଣା ଟଣି ବେଳେ
ମିଠେଇ ଗଲା,
ଗଡ଼ ଗଡ଼ ହୋଇ
ଛିଡ଼ି ପଡ଼ିଲା ।୧୦।
ଭାଙ୍ଗିଲା ସପନ
ମଉସା ଉଠି,
ଦେଖିଲେ ଚିରିଚି
ତକିଆ ଗୋଟି ।୧୧।

ସପନେ ତକିଆ
ମିଠେଇ ପରି,
ଫଡ଼ ଫଡ଼ା ହେଇ
ଯାଇଚି ଚିରି ।୧୨।

# ଚଢ଼େଇ ପିଲା



ଚଢ଼େଇ ପିଲାଟି
କଲା ଅଝଟ,
ଆଣି ଦିଅ ବାପା
ଗୋଟାଏ ଖଟ,
ଶୋଇବି ସେଠି;
ପାଠ ପଢ଼ି ଯିବି
ସକାଳୁ ଉଠି । ୧ ।

କହିଲେ ଆଦରେ
ବାପା ବୁଝାଇ,
କଥା ଶୁଣ ମୋର
ଟିକି ଚଢ଼େଇ,
ନୋହି ଅଝଟ;
ବସାରେ ଶୋଇବୁ
କିହେବ ଖଟ! । ୨ ।

ବୁଝିଲା ନାହିଁ ସେ
ଚଢ଼େଇ ପିଲା,
କଇଁ କଇଁ କାନ୍ଦି
ଅଥୟ କଲା,
ବିକଳ ପାଇ;
ଖଟଟିଏ ବାପା
ଆଣିଲେ ଯାଇ ।୩।

ଗଛର ଡ଼ାଳରେ
ଖଟ ଝୁଲଇ,
ଚଢ଼େଇ ପିଲାଟି
ଶୋଇଲା ତହିଁ,
ଗୋଟାଏ ଦିନ;
ଆସିଲା ହଠାତ୍
ଝଡ଼ ତୋଫାନ ।୪।

ଯତନେ ତିଆରି
ଚଢ଼େଇ ବସା,
ଖାତର ନ ଥାଏ
ଝଡ଼ ବରଷା,
ଖଟଟି ଏଣେ;
ଛିଡ଼ି ପଡ଼ିବକି
ପାଣି ପବନେ ।୫।

ଶୋଇଥିଲା ଖଟେ
ଚଢ଼େଇ ପିଲା,
ଖଟରୁ ଛିଟିକି
ତଳେ ପଡ଼ିଲା,
କରିବ କିସ;
ଭାଙ୍ଗିଗଲା ଗୋଡ଼
ଉଡ଼ିଲା ହୋସ ।୬।

ସକାଳୁ ଆସିଲେ
କେତେ ଚଢ଼େଇ,
କହିଲେ ଶୁଣରେ
ଟିକି ଚଢ଼େଇ,
ଅଝଟ କଲୁ;
ଖଟରୁ ପଡ଼ିଲୁ
ଫଳ ପାଇଲୁ ।୦।